# KAMALA

BY

*Damodar Mishra Padyalankar*

Teacher Vernacular School

BAMRA

# କମଳା ।

---

ବାମଣ୍ଡା ଦେଶୀୟ ବିଦ୍ୟାଳୟର,

ଅଧ୍ୟାପକ

ଶ୍ରୀ ଦାମୋଦର ମିଶ୍ର ପଦ୍ୟାଳଙ୍କାର

କର୍ତ୍ତୃକ

ପ୍ରଣୀତ ଓ ପ୍ରକାଶିତ ।

*Printed at the*

*Jagannath Ballava Press*

BAMRA

1892

# ଉପହାର ପତ୍ର ।

ସକଳ ସଦ୍‌ଗୁଣାଧାର ବିଦ୍ୟୋତ୍ସାହୀ ପ୍ରବର
ସାହିତ୍ୟାନୁରାଗୀ ପରମମାନ୍ୟବର ଶ୍ରୀଲଶ୍ରୀଯୁକ୍ତ
ବାମଣ୍ଡାର ଯୁବରାଜ ଶ୍ରୀସଚ୍ଚିଦାନନ୍ଦଦେବ
ମହୋଦୟ ଶ୍ରୀ କରକମଳେଷୁ

ସମୁଚିତ ସମ୍ମାନ ପୁରଃସର ନିବେଦନମିଦଂ ।

ଶ୍ରୀମନ ଯୁବରାଜ !

ଶ୍ରୀମନ୍ତଙ୍କର ପିତା ମହୋଦୟ ଯେପରି ସକଳ ସଦ୍‌ଗୁଣାଦରେ ଅଳଙ୍କୃତ ହୋଇ ଝିନ ଉତ୍କଳ ପ୍ରଦେଶରେ ପ୍ରତିପତ୍ତି ଲାଭ କରି ଅଛନ୍ତି ; ଆପଣଙ୍କଠାରେ ସେହି ବଂଶୀୟ ସୌଜନ୍ୟାଦି ସମୁଚିତ ସଦ୍‌ଗୁଣ ମାନଙ୍କର କୌଣସି ଅଭାବ ନାହିଁ । ମୁଁ ଅଦ୍ୟ ଆପଣଙ୍କର ସେହି ଯଶଃ କୁସୁମର ମନୋହର ସୌରଭରେ ବିମୋହିତ ହୋଇ ଆଶାନ୍ୱିତ ହୃଦୟରେ ମହୋଦୟଙ୍କର ପବିତ୍ର ନାମରେ ଏହି କ୍ଷୁଦ୍ର " କମଳାକାବ୍ୟ " ଟିକୁ ଉତ୍ସର୍ଗ କଲି , ସାଦରେ ପରିଗୃହୀତ ହେଲେ ଶ୍ରମସଫଳ ବୋଧ କରିବି ।

ନିବେଦନମିତି ତା୧ । ୧୧ ୯୬

ଶ୍ରୀ ଶ୍ରୀମନ୍ତଙ୍କର

ଏକାନ୍ତ ଅନୁଗ୍ରହପ୍ରାର୍ଥୀ

ଶ୍ରୀଦାମୋଦର ମିଶ୍ର ପଦ୍ୟାଳଙ୍କାର--ବାମଣ୍ଡା

# କମଳା ।

କୋମଳ-ହୃଦୟା — କମଳିନୀ-ପତ୍ର
ପ୍ରଛଟୀ — ଅଚଳ-ଚୂଳେ
ଲଜେଦେଉଁ ଧର୍ — ଶ୍ରେଣୀ ଅଚ୍ଛାଦନ୍ତି
ଶରୀର — କୃଷ୍ଣ ଦୁକୂଳେ ॥
ଲାବଣ୍ୟ — ସରସୀ — ଶୀଳମା — ସଲିଳେ
ନୃତ୍ୟ କଲା କୁମୁଦନୀ
କୁସୁମ - ଲମ୍ପଟ — — ଭ୍ରମର କୁଳର
ହୋଇ ଚିତ୍ତ ବିନୋଦିନୀ ॥
ବଦନ - ମୁଦ୍ରିତ — କର କମଳିନୀ
ସରସୀ - ହୃଦୟେ ଭାସେ
ଓଷ୍ଠ - ତୃଷି — ଦୁଃଖ — ଚିନ୍ତ କଲା ଶବ
କବି—ମାନସକୁ ଅସେ ।
ଅବଦାତ — କ୍ଷୀର — ସିନ୍ଧୁ — ନବନୀତ
ନୀଳ - ନଭେ ମନୋରମା
ଅଖିଳ - ଜଗତେ — କିଅଛୁ ଭାସନେ
କି ଦେବ କବି ଉପମା ?
ଚନ୍ଦ୍ରିକା - ଦୁକୂଳେ ବିଶୋଭି ନୋହିଛୁ ?
ଶୋଭାମୟୀ—ବଶୀବସୀ

ଯାଙ୍କଣ୍ଠେ ମଞ୍ଜୁଳ ଶୁଭ୍ର- ହାର୍ - ମାଳେ
ଚନ୍ଦ୍ରମ ପଦକ ଧର ॥
ମାନସ - ମନ୍ଦିରେ ଫଂକାଶ ଏସନ
ଦେଖିବେ କୃଶୀ — କାଳୀଙ୍କି
ଚକ୍ଷୁ - ବନ୍ଧାପନା — ମାନସେ ଭରେ କ
ବହୁଛୁ ରୌପ୍ୟ ଥାଳକ ?
କାଳିମାରେ ବନ. — ଚିସ୍ତୃ ଅଙ୍ଗପ୍ରଭ
ଦିଶେ ଯେ କଳା ସକଳ
ଯାମିନୀ — କାମିନୀ — ରଖିଛୁ ଢାସିକା
ସୁଶ୍ୟାମଳ - ଦୂର୍ବାଦଳ ?
ଦିବା ଚନ୍ଦ୍ର - ତାର୍ — ଦଣ୍ଡ - ବନ୍ଧ୍ୟ ଧର
ଅଭିନବ କୀର୍ତ୍ତି—ଲତା ?
ଯାସମେ ଉପମା — ନପାଇ କବି ଏ
ହୃଦେ ଲଭୁଥାନ୍ତି ବ୍ୟଥା ॥
ଅହୋ କି ସୁନ୍ଦର —— ଦଶଇ ଅଖିଳ
ଜଗତ ଉଜ୍ଜ୍ୱଳ ମସ୍ତୃ
ଏରମ୍ୟ ସମୟ କେଉଁ ପ୍ରାଣୀ ହୃଦେ
କଢ଼ନ ହିଁ ସୁଖୋଦୟ ?
ଫୁଟେ — ସୁପ୍ରସୂନ — ହାସ ଭଙ୍ଗିମାରେ
ଗୁଚ୍ଛ ଧଗ୍ରନ୍ଧ ଯେତେ
ଦଗ କଦଗର ଶାଖା ଶାଖାନ୍ତରେ
ଭ୍ରମିଲେ ଦବାକ କେତେ ॥

ହିମେ ହେମ ଭୂତ — ଧାତ୍ରୀ ବସୁମତି
ହୋଇଲା ଅତି ନୀରବ
ମଧ୍ୟେ ମଧ୍ୟେ ସ୍ଫୁଟ — ବିଲ ପୂର୍ଣ୍ଣ କରେ
ଶ୍ୱାନ ଶୃଗାଳଙ୍କ ରବ ॥
ବର୍ମ—ଦାୟିନୀ — ଭଦ୍ରାଦେବୀଙ୍କର
ବିଗ୍ରମ ପ୍ରଦ ଅଙ୍କରେ
ବିଗତ ଭାବନା ବିସ୍ମୃତି — ସଲୀଳେ
ଭେଜ ସୁପ୍ତ ସର୍ବନରେ ॥
ଚନ୍ଦ୍ରମା—କିରଣେ — — ସମୁଜ୍ଜ୍ୱଳ ଧରା
ସ୍ୱଚ୍ଛେ ଶରତ କାଳ
ରୌପ୍ୟ ଖଣ୍ଡପରି ଭାସି ବୁଲୁଛନ୍ତି
ଶୂନ୍ୟେ ଶୁଭ୍ର ଅଭ୍ରଜାଳ ॥
ଦୁର୍ଗନ୍ଧ—ନାଶିନୀ — ଦୁର୍ଗାଦେବୀଙ୍କର
ଉତ୍ସବ ଦର୍ଶନ ପାଇଁ
ଚନ୍ଦନ କଳସୁଁ ବୃନ୍ଦନ ଧ୍ୱଂସନେ
ଭବାର୍ଣ୍ଣବୁଁ ହେବ ତ୍ରାହ ॥
ଅସ୍ଥି ବିକଟାଳ ଗଳେ ମୁଣ୍ଡମାଳ
ଶ୍ରୀକଣ୍ଠେ ମନ୍ଦାରମାଳ ।
ଶୋଭିତ ଶ୍ରୀଅଙ୍କରେ ଯେଉଁ ବସିଛନ୍ତି
ଶତ୍ରୁପକ୍ଷେ ଯେହ୍ନି କାଳ ॥
ଶ୍ରୀହର—ବଲ୍ଲଭା — ଶ୍ରୀପଦ୍ମରେ ଭକ୍ତି—
—ଭରେ ହୋଇ କୃତାଞ୍ଜଳି

ଛଣାଇଲ ଦୁଃଖ ମାତାପାଶେ ଯଥା
ସନ୍ତାନ କରଇ ଅଳ ॥
" ନମସ୍ତେ ସର୍ବାଣୀ ଇଶାନୀ ଇନ୍ଦ୍ରାଣୀ
ଈଶ୍ୱରୀ ଈଶ୍ୱର ଜାୟା
ହର--ମନୋହରା ଉମା, ପକୃପ୍ରିୟା,
ମାହେଶ୍ୱରୀ, ମହାମାୟା ॥
ତୁମେ ଉତ୍କଳ ତୁମେ ଚନ୍ଦ୍ରନ୍ଦନେ
ମାତଃ ଶ୍ରୀ ଭଦ୍ରକାଳିକେ !
ଭକ୍ତ ଅଭିହର୍ତ୍ତୀ ସର୍ବ ସୁଖଦାତ୍ରୀ
ନମୋ ନୃମୁଣ୍ଡ ମାଳିକେ !
ଏମୋ ଅସମୟ ଘୋନବା ଦନଯ୍ୱ
ମାଗୋ ବିପଦବିଚ୍ଛେଦନୀ
କ୍ଲେଶହିଂ-ବହନୀ ରକ୍ଷ ବିମର୍ଦ୍ଦିନୀ
ଭବତାଉ — ପ୍ରଶୋଦନୀ ॥
ସଂସାର ତୋହର ଅଟେ ଖେଳଘର
ମାୟା ଛାୟା ବାଜୟର
ଅଭୟ ବରଦେ ! ଅଭୟ ବର-ଦେ ,
ଅକିଞ୍ଚନେ କୃପାକର ॥
ତୋହର ନଜ୍ରହେ ଗୃହ ଗୃହେଶ୍ୱର
କ୍ଷଣକେ ହୁଏ ଭିକାର
ତୋହ ଅନୁଗ୍ରହେ ହୁଏ ଗୃହେଶ୍ୱର
ପର୍ଣ୍ଣକୁଟୀର ଦହାଣ " ॥

ମହାମାୟୀଙ୍କର ଚରଣ-ନିଃସ୍ୟନ୍ଦ-
-ମଧୁସିକ୍ତ-ପ୍ରସାଦକୁ
ପବିତ୍ର ହୃଦୟେ ସେବନ କଲିମୁଁ
ଲଭି ଅତି ପ୍ରମୋଦକୁ ॥
ଦେବୀଙ୍କ ଅଦୂରେ ବନ୍ଧା ହୋଇଛନ୍ତି
ଅସଂଖ୍ୟ ଛାଗ ନନ୍ଦନ
ଅସ୍ତ୍ରଧାରି ଯୂବା କାଳରୂପେ ଛିନ୍ନ
କରନ୍ତି ଅତି କ୍ରନ୍ଦନ ॥
କ୍ରମେ ହୋଇ ଦେବୀ ପାଶରୁ ମେଲାଣି
ଗମନ କଲି ସତ୍ୱର ;
ଅଦୂରେ ଶୁଣିଲି ହୃଦୟ ଦାରୁଣୀ
ଅବଳା ରୋଦନସ୍ୱର ।
ଶତ କଳ କଣ୍ଠ କଣ୍ଠରୁ ମଧୁର
ଶୁଭେ ସୁସ୍ୱର ଲଳିତ
ଦଳିଦେଲା ହାୟ ହୃଦୟ କନ୍ଦଳୀ
ତାହାର ଶୋକ ସଙ୍ଗୀତ
ପୁଣି କିଛି କ୍ଷଣେ ଭାବିଲି ଏ ଅବା
ବସନ୍ତ ରାଗିଣୀ ଗୀତ
ଗାନ କରେ ମସ୍ତି ——— ମହିଳା ସମ୍ମୁଖେ
ଯାମିନୀ - କାମିନୀ ଚିତ୍ତ ?
କିବା ନବପ୍ରିୟ- ବିଗତ ବସନ୍ତ-
ବିଭବ ମାନସେ ସ୍ମରି

ମୋହର ଅଦୃଶ୍ୟ- ସ୍ଥାନେ ବୁହାଉଛୁ
ଶୋକାର୍ତ୍ତି - ଗୀତ - ଲହରୀ ? ॥
କେତାଣି ହପାଇଁ ସେକାଳେ ନୟନୁ
ବହିଲା ଲୋତକ—ଜଳ ।
ଜାଣି ନପାରିଲି କିଯାଁ ହୃଦ ମୋର
ହୋଇଲା ଦୁଃଖେ ଭରିଲ ॥
କ୍ରମେ ହୃଦସ୍ଥର ହର୍ଷ — ଧ୍ୱଂସ କଲା
ପ୍ରବେଶି ଦାରୁଣ—ଦୁଃଖ ।
ଅକାଳ – ନୀରଦ ଲୁପ୍ତକଲା ପ୍ରାୟ
ବିମଳ – ଶଶି – ମୟୂଖ ॥
କ୍ଷଣ କାଳ ରହି ଅବଶେଷ ବସିଲୁଁ
ଡାକିଲ ଶୋକାର୍ତ୍ତି – ବାଣୀ ।
ଜାଣିଲି ସ୍ପଷ୍ଟ " ବାମାଶୋକ " ଥର
ନଚାଇଲ ପାଦ – ପାଣି ॥
ବୋଲଇ କାମିନୀ "ଅହୋ !! ପ୍ରାଣେଶ
ନୟନ – ପ୍ରତିମା ମୋର ।
ତେଜି ଦୁଃଖିନୀକୁ କେଉଁ ଅପରାଧେ
କାଟିଦେଲ ପ୍ରେମ ଡୋର ? ॥
ଧର୍ମ – ପବନ ନିତ୍ୟ, ଶାନ୍ତ ଧାମେ
ଗମନ କଲ ଅନନ୍ଦେ ।
କଣ୍ଟକ ଦେଶନେ ବାସନ୍ତର ଅଗ୍-
ସାଗର – ନୈକଟ – ବନେ ? ॥

ଘନେ ଘନଲଘା          ପ୍ରାଣେ କାହିଁ ଦୂର
ହେଲ ଭବ ହାବ ଭାବ? ।
ଗୃହୁଁ ଗୃହୁଁ କେତେ          ଶୀଘ୍ର ଗଲବୁଡି
ପ୍ରେମ-ପୂର୍ଣ୍ଣ ସୁଖ-ନାବ ॥
ହା !! ବିଧି କିଦୋଷେ          କାଟିଦେଲୁ ମୋର
କଣ୍ଠ – ଶୋଭା – ରତ୍ନ ମାଳା ? ।
ନଙ୍ଗାଶ୍ରୁକ ସଦା –          ଢାଳରେ ରତନ-
ଲୋଭନୀ ଅବଳା ବାଳା ? ॥
ପ୍ରାଣେଶ ମୋହର          ସୁବର୍ଣ୍ଣ-ପିଞ୍ଜର
ମୁଁ ଅଟେ ତହିଁକି ଶାରୀ ।
ପିଟିଲୁ ପିଞ୍ଜର          ସହିତ ମୋତେଭୁ
ହୃଦୟେ କିସ ବଚାର ? ॥
ସ୍ୱାମୀ-ସୂର୍ଯ୍ୟ ଦେଖି          ନଳିନୀ ପତ୍ନୀ
ସୁଖେ ବଞ୍ଚୁଥିଲ ଦିନ ।
ତରଣି ପାଇଁ          କର ଅସ୍ତମିତ
କିଦୋଷେ କଲୁ ଶ୍ମଶାନ ? ॥
ଜଳ ଲଗି ବିନା          ଜଳ ପ୍ରବହନ୍ତ
ମୀନାଳ କୂଳ – ପୁରଛେ ।
ତା ଯେବେ ବିନାଶ          ହୋଇବ ସେମାନେ
ପ୍ରାଣ ରଖିବେ କେମନ୍ତେ ? ॥
ସ୍ୱଦେଶ – ବାସୀନେ          କେହର ପାରଇ
ମୋହର ଦୁର୍ଗନ୍ଧ – ଭାର ? ।

ବ୍ୟାଳ -- ବନା ଦଣ୍ଡେ ଧରଣୀ ବହିବ
କ୍ଷମତା ଅଛୁ କାହାର"? ॥
ଏହିପରି ବାଳା — ଶୋକାର୍ତ୍ତି- ବଚନ-
ଶୁଣି ଉଠିଲ ତକ୍ଷଣି ।
ଗମନ କଲମୁଁ ଅସୀନ ହୋଇଣ
ଯହିଁ ସେ ରମଣୀ ମଣି ॥
କ୍ରମେ କ୍ରମେ ଗ୍ରାମ — ସୀମାନ୍ତ- ଶ୍ମଶାନ-
ପୁରତ • ପାଦପ - ତଳେ ।
ବସିଅଛୁ ଏକ ଲାବଣ୍ୟ ପ୍ରତିମା
ପ୍ରଭାରେ ଦଶ ଉଜଳେ ॥
ଅହୋ !! ବିଭୀଷଣ ଅଟଇ ଶ୍ମଶାନ
ଦର୍ଶନେ ମାନସ ଭୀତ ।
ଭୟଙ୍କର ରୂପେ ଶବ-ଦଗ୍ଧ-ଚିତା —
ବାଷ୍ପ ଅକାଶେ ଉଥିତ ॥
ଶବ—କଙ୍କାଳ ଚତୁର୍ଦ୍ଦିଗେ ଘେରି
ଥିଲ୍ ଥାଉ ବଂଶଦଣ୍ଡ ।
ଲୁଷିଦେଇ ଶବ -- ଦେହେ , କରୁଛନ୍ତି
ମୃତପିଣ୍ଡ ଖଣ୍ଡଖଣ୍ଡ ।
ଅତି ବିକଟାଳ ନର--ମୁଣ୍ଡ ମାଳ
ହୋଇଅଛୁ ଗଦା ଗଦା ।
ଅସ୍ଥିମାନେ କାହିଁ ଧବଳ ଦିଶଇ
ଅବନାଶି -- ନିଦ୍ରା--ପଦା ॥

ଯେଉଁଠାରେ ଅବା　　ପ୍ରୋଥିତ ଶବଙ୍କୁ
କାଢି ଓଟାରନ୍ତି ସ୍ନାୟୁ ।
ନର-ମାଂସ-ଭୋଜୀ — କ୍ରୂର ଶ୍ୱାନ ସଙ୍ଗେ
ଭୀଷଣ ଗୃଧ୍ର ଗୋମାୟୁ ॥
ଯେଉଁ ମୃତ ପିଣ୍ଡେ　　ପୂୟ କୀଟ ପୂର୍ଣ୍ଣ
ଦୁର୍ଗନ୍ଧ ନୁହେ ସମ୍ଭାଳ ।
ଏମନ୍ତ ସ୍ଥାନରେ　　ବସିଛୁ ଲଳନା
ସନ୍ନିକଟେ କେନ ଅଳ ॥
ଧନ୍ୟ ଧନ୍ୟ ତୁରେ　　କ୍ରୂର କର୍ମ୍ମକାଳ !
ତୋପର କାହା କ୍ଷମତା ? ।
ଚତୁର୍ଦ୍ଦିଶପୁର　　ଅମୃତେ ରଖିଛୁ
ଶୃଙ୍ଖଳେ ଗଜେନ୍ଦ୍ର ଯଥା ॥
ସମସ୍ତ ସୁଷମା　　ଶ୍ମଶାନ ବିନା
ତୋହର ଦଗ୍ଧ-ନୟନେ ?
ଦୟା-ଧର୍ମ୍ମ କ୍ଷମା　—　ଆଦ ସଦ୍‌ଗୁଣରୁ
କଣ୍ଟ କି ନାହିଁ ତୋମନେ ?
ଧନୀ, ମାନୀ, ପ୍ରଜା, .　　ବାଳକ, ରମଣୀ
ବୃଦ୍ଧ, ବୃଦ୍ଧା ଆଦ ଯେତେ ।
ପଶୁ ପକ୍ଷୀ ପ୍ରାଣ.　　ଦଳରେ ଦୁର୍ମ୍ମତି !
ସଂହାରେ କହବ କେତେ ?
ଅହାଏ ଶ୍ମଶାନ　　ଦର୍ଶନେ ମାନସେ
ସ୍ଫୁରଇ କେତେ ବିଷୟ !

ଦେଖି ଜଳଧର ମୋହିବ ଚରଳ
କାହାର ଶିଳା-ହୃଦୟ ?
ପ୍ରଦର୍ଶିନ ମାଝେ କଳ୍ପନା ଦ୍ୱରଛେ
ଚମଛ ହୃଦ-ପଥରେ ।
"ଯାହା ଦେଖିବେଉ ବ୍ୟାକୁଳ ସେଛନ୍ତି
ଅବଶ୍ୟ ଅପିବୁ ଥରେ ".
ବନମଧ୍ୟେ ଘୋର ନଶୀଥେ ଭୀଷଣ
ସ୍ଥାନେ ବସିଛି ଲଳନା ,
ଜାଣିବା ନିମନ୍ତେ ବେଲୁଁ ବେଲ ପାପ-
ମାନସ ହେଲା ଉନ୍ମନା ।
ନିକଟେ ତାହାର ପ୍ରବେଶି ଅହା !! ମୁଁ
ଦେଖିଲି କି ମନୋରମା ,
ଭୂଇଲୁଁ କିଅବା ଫୁଟି ବାହାରଛି
କମଳ-ନବ ଚନ୍ଦ୍ରମା ?
ବଦଳିତ ସ୍ୱର୍ଣ୍ଣ କେତକୀ ପ୍ରକାର
କୋମଳ-କରାଙ୍ଗ-ପ୍ରଭା ,
ବରଣ୍ଟ ସ୍ୱନାମ ସାର୍ଥ କରନ୍ତି
ଜଗତେ ଏରୂପ ଅବା ?
ମୁକୁଳିତ ହୋଇ ଲୁଣ୍ଠିତ ତାର
ଓଡ଼ର—କୁନ୍ତଳ ଶ୍ରେଣୀ
ମୃଦୁ ମନ୍ଦବାତେ କାଳନ୍ଦରେ ଯଥା
କୁଟିଳ-ଲହରୀ ବେଣୀ ।

ହୋଇ ଦର ଦର ନୟନୁ ତାହାର
ସ୍ରବଇ ଲୋତକ ଜଳ ,
ଝସିଲ ବେଳକୁ କରେ ପଡ଼ିବତ
ଝମଲ ମୁକୁତା ଫଳ ।
ଲାବଣ୍ୟ ମୟୂର ଲାବଣ୍ୟ - ପ୍ରତିମା
ମୋହନ ଭ୍ରୂଲତା କେଲ ,
କର ପଡ଼ିହନ୍ତ ଶୀଘ୍ରନ କରଛି
ଦାରୁଣ ଦୁଃଖ-ଝୁଦ୍ୱେଲ ।
କଜ୍ଜଳାକ୍ତ ନେତ୍ର ବେନରୁ ଲୋତକ
ସଲିଲେ ଧଜ୍ଞିଲ ଗଣ୍ଡ ,
ଦଶୁଥାଇ ଯଥା ପାରଦ ବନ୍ଧନେ
ବିମଳ - ମୁକୁର ଖଣ୍ଡ ।
ଯେ ଗଣ୍ଡରେ ପୁଣି ଥୋଇଅଛୁ ପାଣି
ଠେକ ଶାଳ-ଶାଖା-ବାହୁ ।
ବିଷନ୍ନ ବଦନ ଦେଖି ପାଶ୍ୱେ ଏକ
ଚନ୍ଦ୍ରକୁ ଗ୍ରାସୁଛି ରାହୁ ?
ମୋତେ ନବାଗତ ଦେଖିବିଶାଳାକ୍ଷୀ
ସ୍ୱର୍ଣ୍ଣଲତାବୃତ ମଥା ।
କର ଜାନୁ ବାସେ ଅଚ୍ଛାଦିଲା ଯଥା
ଘନକୋଳେ ଘନଲତା ।
ତାଙ୍କ ସହିତ ଦଶଇ ଶୋଭିତ
ଶ୍ରୁତିରେ ସ୍ୱର୍ଣ୍ଣ କୁଣ୍ଡଳ ,

ଚନ୍ଦ୍ର ବେନ ପାର୍ଶ୍ୱେ    ଗୁରୁ ଗୁନ୍ଦ ପ୍ରାପ୍ତ
ଚମ୍ପଇ ଗଣ୍ଡ ମଣ୍ଡଳ ।
ଭଙ୍ଗି ଶାର୍ଙ୍ଗ ବର୍ଷି    ଅବଳା ମଣିର
ସମସ୍ତ ନୁହେ ଅଧିକ ,
ହିପୁର୍ - ମୋହିନୀ    କାମ--ଲଳନାର
ରୂପକୁ କରଇ ଧିକ୍କ ।
ପ୍ରଗ୍ନ ଭଲ ସଖି    ମାନଙ୍କୁ ବସ୍ତ୍ର
ଅମୂଲ କହିଲେ ଯାହା ।
ଅକ୍ଷମ ଏବଣ    ସୃଷ୍ଟି କରିବାକୁ
ଲେଖନୀ ଦଣ୍ଡରେ ତାହା ।
ଭଳିଲ " ଏହାର    ନାମଟି 'କମଳା'
ବ୍ରାହ୍ମଣ ବଂଶେ ଉତ୍ପତ୍ତି ,
ଏହି ଏକମାତ୍ର    ପିତା ମାତା ଙ୍କର
ଅଟଇ କନ୍ୟା ସନ୍ତତି ।
ବେଦଜ୍ଞ ମେଧାବୀ    ନୀତି ପରାୟଣ
ଭୂଧର ଗୋପାଳ ମିଶ୍ର ,
ଯାର ବ୍ରହ୍ମତେଜେ    ଦୂର ହୋଇଅଛି
ସୁବର୍ଣ୍ଣପୁର—ତମିସ୍ର ।
ତାହାଙ୍କର ଅହା !!    ଏହି ସୁକୁମାରୀ
ଅଟେ ଏକମାତ୍ର କନ୍ୟା ,
ସଂଖ୍ୟାବାନ ଯାକୁ    ଦେଖି କହୁଥାନ୍ତି
"ସୌନ୍ଦର୍ଯ୍ୟେ ପରମ ଧନ୍ୟା"

କୃଷ୍ଣଚନ୍ଦ୍ର ନାମେ ଦ୍ୱିଜପୁଙ୍ଗ ସଙ୍ଗେ
ଅବଳା-ମୌଳି - ରଞ୍ଜନ ,
ପରିଣୟ ହୋଇ ଦାନ କରିଥିଲି
ପ୍ରଣୟ ଜୀବନ ଧନ ।
ସ୍ୱର ନାୟିହୋଇ ଦ୍ୱିଜ ପୁଙ୍ଗରୂପ
କିଙ୍କହ୍ନ କରିବ ଶେଷ ?
ଯାରୂପ ବର୍ଣ୍ଣିନେ ଯଶ ନ ଲଭିବେ
ଦେବକୁଳ-କବି ଶେଷ ।
ରୂପରେ ଛଳକେ ସମାନ ନୋହିବ
ବଣରୂପ - ସାରମାର ।
ଧନରେ କୁବେର ମାନେ କୁରୁପତି
ସମାନ ନୁହନ୍ତି ଯାର ।
ଦାନ ପଣରେ ମାନବ ଦୁର୍ବଳତା
ସୁରେନ୍ଦ୍ର ଘାର ଉତ୍ତମ ।
ଅଟି ଅଗ୍ରପ୍ରାପ୍ତେ ନାସିକା , ବଦନ
ଅଟଇ ପୂର୍ଣ୍ଣେନ୍ଦୁ ସମ ।
ଆଜାନୁ ଲମ୍ବିତ ଭୁଜ ସୁଲଳିତ
ନେତ୍ର ଜନେ ନୀଳୋତ୍ପଳ ।
ତପ୍ତ - ତାମ୍ର ପ୍ରାୟ ବଶଦ - ପ୍ରତଣ୍ଡ
ନବନୀତରୁ କୋମଳ ”
ଏପରି ଜାବେଶ — ଅଙ୍କ ବିରହିତା
‘କମଳା’ କମଳାନନା ।

ଜ୍ୱଳନ୍ତ – ଚିତାରେ ପ୍ରବେଶି ନାଶିବ
ଅପଣା ହୃଦ - ବେଦନା ।
ଏହୃଦେ ଜଳଇ ଭୟଙ୍କର ଚିତା
ଆକାଶ – ଭେଦନ କରି ।
ସେହିଚିତା - ଗର୍ଭେ ଜୀବନ ଅର୍ପିବ
ନିଷ୍ଠୁର - ନାରୀ "ସୁନ୍ଦରୀ" ।
ଶୁଣି ସଖୀମୁଖୁଁ ବଚନ ଏସନ
ଭଞ୍ଜିଲି ପ୍ରବଳ - ଦୁଃଖ ।
ପ୍ରଶଂସି କହିଲି – ହେ ବଣ୍ଡୁସୁନ୍ଦରୀ !
"ଲଭ କାନ୍ତ – ପ୍ରାପ୍ତ ସୁଖ"
କଥାତା ସୃଷ୍ଟିରେ ତୋସମେ ରମଣୀ
ହୋଇଅଛ ହେବ ଲକ୍ଷିତ ?
" ସତୀ ଶିରୋମଣି" ଅଭିଧା ଅକ୍ଷୟ
ଅକ୍ଷରେ ଥିବ ଅଙ୍କିତ ।
ଗୃରୁ ଚନ୍ଦ୍ର - ମୁଖୀ — 'କମଳା' ପାଦପ
ତଳୁଁ ହୋଇ ସମୁତ୍ଥିତ ।
ମନ୍ଥର ଗମନେ କାନ୍ତ ସନ୍ନିକଟେ
ପ୍ରବେଶ ହେଲ ତ୍ୱରିତ ।
ବିନମ୍ରିତ ସଜ — — ସରୋଜ – ବଦନୀ
ଦଣ୍ଡ–କାନ୍ତ–ପଦ–ପ୍ରାନ୍ତେ ।
ଏତ ଭକ୍ତିଭରେ — ବନ୍ଦିଲି ପ୍ରାଣେଶ
ଚତୁର୍ବର୍ଗ–ଫଳ-ପ୍ରାପ୍ତେ ॥

" ହେନାଥ ! ଦୁଃଖିନୀ — ଦୁର୍ଗତି-ଧ୍ୱଂସକ
ମୋପ୍ରତି କିମ୍ପାଁ ନିର୍ଦ୍ଦୟ ?
ଯେନମୋ ପ୍ରୀତି — ଚନ୍ଦନ ସିକ୍ତ
ଶ୍ରୀପଦେ ଦେଇ ଅର୍ଘ୍ୟ ।
ନବଦୂର୍ବାଦଳ — ଶ୍ୟାମ-ବର୍ଣ୍ଣ - ମୂର୍ତ୍ତି
କାମାର୍ଣ୍ଣବ ସ୍ୱଭାବକ ।
ଦୁର୍ବଳା - ଅବଳା — ତୃଷାର୍ତ୍ତା - ଚକୋରୀ
ପକ୍ଷେ ରସ - ପ୍ରଦାୟକ ।
ମୋହର - ହୃଦୟ — ତଟିନୀ - ନାବିକୁ
ତୁମ୍ଭେ ଏକା କର୍ଣ୍ଣଧର ।
ରସିକା - କୁମୁଦ — କୁଳ ବିକାଶକୁ
ତୁମ୍ଭେ ପୂର୍ଣ୍ଣନିଶାକର ।
ଭବ ପଥ ପ୍ରାନ୍ତେ — ଜ୍ୱଳନ୍ତ - ଧାବକେ
ଦଗ୍ଧଇ - ପ୍ରାଣ- ବନ୍ଧନ ।
ହେ ଅଗତି - ଗତି ! ଏହିଭିକ୍ଷା ଯେମନେ
ପ୍ରାପ୍ତହେବ ତବ ସଙ୍ଗ " ।
" ହେ ତାରକ ! ବାରେ ଭୀମ-ମୂର୍ତ୍ତି ଧରି
ସତ୍ୱରେ ମୋତେ ସଂହାର ।
ଅବଳା ବାଳାକୁ ପାପାବ୍ଧି - ସଂସାରୁ
ସଦୟେ କର ନିସ୍ତାର " ।
ଯେଉଁ ପତି-ସଙ୍ଗେ — ଅବଳା-ଘଟନା
ନଇଲେ ସ୍ୱର୍ଗ - ସମ୍ପଦ ।

ସେ . ପଛ ଶ୍ରୀଅଙ୍କ — ବରଦ୍ଧିତା ବାମା
ଲଭଇ ସିନା ବପଦ ।
କାନ୍ତ - ପ୍ରାଣବାଯ୍ୟୁ — ଦ୍ୱନ୍ଦର୍ଗରେ ଯେନ୍ତୁ
ଲୋଡ଼ଇ ଆନ ସୁଖକୁ ।
ଛୁଟ ନ ଯୋଗାଇ — ନିମିଷେ ଦର୍ଶନ
ନିମନ୍ତେ ଛାଡ଼ା ମୁଖକୁ ।
ଏଥ୍ପର ସ୍ତବ — କର ବାଳାମଣି
ସଖୀଙ୍କୁ କଲ ମେଲଣି ।
ପଛ-ପଦ -ପ୍ରାନ୍ତେ ଅର୍ଦ୍ଧି—ଯୁକ୍ତ-କାଷ୍ଠେ
ଅଙ୍ଗ-ଯୁକ୍ତକଲ୍ପ ଅଣି ।
ଘନଭର - ହୋଇ ଛଳନ୍ତି ଅନଳ
ବର୍ଗ,ଗ୍ର,ସୀ ଭୂଧର ।
ଯୁଗ୍ମ - ହସ୍ତେ ପୁଣି ବନ୍ଦିଲେ ସୁନ୍ଦରୀ
ପସାର- ବନ୍ଦନ- ବର ।
ଗଳ—ବସ୍ତ୍ର ହୋଇ ଝାଙ୍କି-ସ୍ୱରେ ସତୀ
ନମିଲ ଦ୍ୱଭୁ - ପଯୃରେ ।
ଶୁଣି ତାର ସ୍ତବ — ଉକ୍ତି ଉପୁଜଇ
ନେତ୍ର ଯୁଗୁଁ ନୀର- କ୍ଷରେ ।
" ହେ ହରି ନନ୍ଦ—ନ — ଜନ ନନ୍ଦନ-
ବରଣ ଗରଲ ଗଲ —
-ବନ୍ଦନ, ଗରଲ — ଗଳ- ଦ୍ୱମର୍ଦ୍ଦନ
ଧ୍ୱଂସ କରୁଣୀ ବ୍ରଜ ।

ବକ୍ଷତ - ବକ୍ଷ ପ୍ର — ସୂନ କରୁଚଇ
ଦିଶଇ ଷ ମନୋରମ ।
ପୂର୍ଣ୍ଣ · ଦେବ · ଭକ୍ତେ କରୁଣା - ପୁଷ୍ପନ୍ତି
ଝରୁଥାନ୍ତି ବାଚଞ୍ଜିମ ।
ଗଜ ଉଦ୍ଧାରଣ — ଦ୍ରୌପଦୀ ତାରଣ
ପ୍ରହ୍ଲାଦ · ସୁଖ- ବର୍ଦ୍ଧିକ ।
ଗୋକୁଳ- ଚନ୍ଦ୍ରମା ବ୍ରଜ-ବାଳାଙ୍କର
ମନୋଜ୍ଞ- ବସ୍ତ୍ର ମର୍ଦ୍ଦିକ ।
ପତି- ପ୍ରାପ୍ତି -ଆଶେ — ଜ୍ୱଳନ୍ତ-ଅନଳେ
କଲ ତନୁ- ସମର୍ପଣ ।
ପତିସଙ୍ଗେ ମୋତେ ସ୍ୱର୍ଗେ ସ୍ଥାନ ଦିଅ
ହେପ୍ରଭୁ ବନ୍ଧ୍ୟ କାରଣ " ।
ବନ୍ଦ ଏହୁପର ଜଗପୃଚ - ପାଦ
ଅନଳେ କେଲ ପ୍ରବେଶ ।
ସୁବର୍ଣ୍ଣ- ପ୍ରତିମା ତୃଣ- ତୁଲ୍ୟ ଧ୍ୱଂସ
ସର୍ବ ଦୁଃଖ , ଚିନ୍ତା ଶେଷ ।
ସଖୀମାନେ କଲେ ହସନା- ନନାଦ
ଅନେ୍ୟକ୍ୱଲେ ହରିଧ୍ୱନି ।
ଗହ ଗହ ଶବ୍ଦେ ହେଲ ମୁଖରିତ
କମଳ- ଚନ୍ଦ୍ର ରଞ୍ଜନ ।
ଶୁଣୁଁ ଶୁଣୁଁ ପୁଣି ଅଦୂରେ ଶୁଭିଲା
ଗହନ କୁକୁଡ଼ ସ୍ୱର ।

ଭାଷିଲା କଣ୍ଟକୂଳ — ପକ୍ଷୀ ବୃକ୍ଷ ଚୂଳେ
ଉଦୟ ତମିସ୍ର - ହର ।
ଜବା - ବିଭୂଷିତ ପଶ୍ଚଏ ସୁନ୍ଦର
ଦିଶିଲା ପୂର୍ବ- ଆକାଶ ।
ନବ ପ୍ରାଣ ପ୍ରାପ୍ତ ହେଲେ ସର୍ବପ୍ରାଣୀ
ରଜନୀ ହେଲା ପ୍ରକାଶ ।
ଜଳମଧ୍ୟେ ଫେନ — ଘନେ ଘନ ଲଭା
କମଳ ପଲ୍ଲବେ ଜଳ ।
ପଶ୍ଚେ ଅଜଭ୍ୟ — ସଂସାର ଚକ୍ଷୁରେ
ଦର୍ଶିଲା ପ୍ରତ୍ୟକ୍ଷ ଫଳ ।
ବିଭୁ- ପଦ- ସ୍ମର — ସେ ଭୀଷଣ ସ୍ଥାନୁଁ
ଗମନ କଲ ସଦନେ ।
ଭାବିଲି ଅସିବ ସନ୍ତ୍ୟେ ଏମନ୍ତା-
ଶୁଣାନେ ମନ୍ଦାଶମୃନେ ।
ଦୟାମୟ ହର ନୀଳାଦ୍ରି - କେଶରୀ
ଶ୍ରୀପଦେ କରେ ପ୍ରଣତ ।
ଦୀନ ହୀନ କ୍ଷୁଦ୍ର -- ଜୀବକୁ ହେପ୍ରଭୁ !
ଚରଣେ ଦିଅ ସ୍ୱଚ୍ଛ ।

ସମାପ୍ତ ।